କବି ଶ୍ରୀଗୋପାଳ ଚରଣ ଦାସଙ୍କ ବିରଚିତ

# ଚନ୍ଦ୍ରହାସ ସୁଆଙ୍ଗ ।

ଅନୁମତି କ୍ରମେ

ଶ୍ରୀ ଅର୍ଜୁନ ମହାରଣାଙ୍କ ଦ୍ୱାରା ସଂଶୋଧିତ ଓ

ପ୍ରଥମବାର ପ୍ରକାଶିତ ।

୮, ସେଣ୍ଟ ଜେମସ ସ୍କୋୟାର, ବହୁବଜାର, କଲିକତା ।



Printed By M. L. Maharana.
CALCUTTA UTKAL PRESS.
8. St. James Square, Bow-bazar.
1921.

ମୂଲ୍ୟ ୦୵ ମାତ୍ର ।



# ଚନ୍ଦ୍ରହାସ ସୁଆଙ୍ଗ ।

ଶୁଦ୍ଧ ବୁଦ୍ଧେ ଶଭ କର ଅଟକ ହେ । ଶ୍ରୀଭାରତ ବିଷୟକ ନାଟକ ହେ । ପଦ । ଧନ୍ୟ ସେ କୁନ୍ତଳ ଦେଶ, ତହିଁ କୁନ୍ତଳ ନରେଶ । ସେ ଦିଶନ୍ତି ଯେହ୍ନେ ସୁଧ ହାଟକ ହେ ।୧। ଦୁଷ୍ଟ ବୁଦ୍ଧି ନାମେ ମନ୍ତ୍ରି, ସେହି ରାଜ୍ୟକୁ ପାଳନ୍ତି । ନାରୀ ଚନ୍ଦ୍ରାବତୀ କେଡ଼େ ଚଟକ ହେ ।୨। ତାଙ୍କପୁତ୍ର ଚନ୍ଦ୍ରହାସ, ତା ଯଶ ହେବୁ ପ୍ରକାଶ । ଗୋପାଳର ପଦ କେଡ଼େ ଚଟକ ହେ ।୩।

---

ମନ୍ତ୍ରୀ—(ସ୍ୱଗତଃ) ଆହା ଆଜ ବଡ଼ ଆନନ୍ଦ ସମୟ ହୋଇଛି । ଏସମୟରେ ବିଧାତା ହୃଦୟରେ ଦୁଃଖ ଦେଲା । ଆମ୍ଭେ କୁନ୍ତଳ ସମ୍ରାଟ ନୋହୁଁ, ତାହାଙ୍କର ମନ୍ତ୍ରି । ଆଜ ପର୍ଯ୍ୟନ୍ତ ସୁଖରେ ଦିନପାତ କରୁଥିଲି, ମନରେ ଭାବିଥିଲି ତାଙ୍କର ପୁତ୍ର ପୌତ୍ରାଦି ନାହାନ୍ତି, ଶେଷରେ ଆମ୍ଭେ ରାଜଗାଦି ଭୋଗକରନ୍ତୁ । ତାଙ୍କର ଛନଛନ ହେଲା ପୁତ୍ର ହେବାରୁ ମନରେ ବଡ଼ଦୁଃଖ ହେଉଅଛି ।

---

ଭାବଥିଲି ଯାହା, ନ ଘଟିଲା ତାହା, ବିହି ଦୁର୍ବିଗ୍ରହ କଲା ।
ଏରାଜ ସମ୍ପଦ, ଭୁଞ୍ଜିବାକୁ ମଧ, ଦେଖୁ୨ ଛଡ଼ାଇଲା । ୧ ।
ବୃଦ୍ଧା ବୟସରେ, ଜନ୍ମିବ କ୍ରମରେ, ହେବାକୁ ମନେ ନ ଥିଲା ।
ନାମ ଚନ୍ଦ୍ରହାସ, ଚନ୍ଦ୍ରରୁ ପ୍ରକାଶ, ଅଧିକ ତେଜ ବହିଲା । ୨ ।
ଏହିକାଳେ ଯଦି, ନୃପତିକି ବଧି, ପାରିଲେ ଯଶ ରହିଲା ।
ତେଣିକି ବାଳକ, କି ବଳ କରନ୍ତା, ଗୋପାଳ ଦ୍ୱିଜ କହିଲା ।୩।

---

ଦ୍ୱାରପାଳ—

ହେଲାରେ କି ପ୍ରୟୋଜନ, ବେଳା ହେଲା ଅବସାନ ।
କି ଲାଜେ ଛଡ଼ାଇ, ଗଳାକୁ ମୋଡ଼ାଇ, ଆଜ କରିବା ନିଧନ ।୧।
ରାଜା ବୋଲି କିଏ ଜଣେ, ଖଟୁଁ ତୁମ୍ଭ ଶ୍ରୀଚରଣେ, ତୁମ୍ଭ ଆଜ୍ଞା
ପରମାଣେ, ନୃପେ କରିବୁ ଶ୍ରାଧ ହେ । ୨ । ଜଳରେ ନେ
ବୁଡ଼ାଇବା, ନଗରକୁ ପୋଡ଼ାଇବା, ଗୋପାଳର ଛଡ଼ାଇବା ଦମ୍ଭ
କଥା ମାନ । ୩ ।

---

ଦୁଷ୍ଟବୁଦ୍ଧି—ଦ୍ୱାରପାଳ, ତୁମ୍ଭ ଯୋଗେ ଏ କଥା ନୁହେଁ ।
ଆମ୍ଭର ଯେଉଁ ସୁପକାର ଅଛନ୍ତି ତାଙ୍କୁ ଡକାଇ ଦିଅ ।

---

ସୁପକାର—

ଚଳନ୍ତା ତେଜ ମନୁ ଆଜ ହେ ଶ୍ରୀମନ୍ତ ମହାରାଜ ।
ପାକ ଶାକ ସବୁ ଆମ୍ଭରି ହାତରେ ସାଧି ନୋହେ କେଉଁକାର୍ଯ୍ୟ ।୧।
ପିୟୁଷରେ ଆଣି ବିଷ ପୂରାଇଲେ କେ ଜାଣି ପାରିବ ବ୍ୟାଜ ।୨।
ମଣୋଇକି ଏହିକ୍ଷଣି ଜଣାଇଲେ, ଅଣାଇ କେ ହେବ ସଜ ।୩।
ଗୋପାଳ ବୋଲେ ଏ କ୍ଷଣି ଫଳ ଦେଖ ରାଜସମ୍ପତ୍ତିରେ ମଜ ।୪।

ସୁପକାର—ଆହେ ଦ୍ୱାରପାଳ, କୁନ୍ତଳ ସମ୍ରାଟଙ୍କୁ ଜଣାଇ ଦିଅ ।

---

ରାଜାଙ୍କର ଭୋଜନ ସାମଗ୍ରୀ ।

ଶାଳିଅନ୍ନ, ସୁନାଥାଳରେ ବାଢ଼ିଛି, ଡାଲିମ୍ବା ଅନ୍ନ ତା ପାଶରେ । ଦଧି ଦୁଧ ଅନ୍ନ ନାନାବିଧ ବ୍ୟଞ୍ଜନ ପୁର ମହକୁଛି ବାସରେ । ୧ । ଖେଚଡ଼ା ଖେଚଡ଼ୀ ପଲଉ ରବଡ଼ି ସର ଦହିକଡ଼ି ତୋଷରେ । ୨ । ମହୁର ଆମ୍ବିଲ ବାଇଗଣ ଝୋଳ, ଝାଳ ହୋଇଅଛି ବେଶରେ । ଗୋପାଳ କହଇ ଏଥୁକି ମିଳବ, ପଡ଼ିବ ଲଳିତା ଶାଗରେ । ୩ ।

---

ରାଜା—ଆହେ ପ୍ରାଣେଶ୍ୱର । ଆଜ ଖାଇବା ସାମଗ୍ରୀ ବଡ଼ ଭଲ ହୋଇଥିଲା । ଖାଇଲା ବେଳୁଁ ମୋହର ଦେହ ବିଷଗ୍ରାସ କଲା ପରି ବୋହଲି ଉଠୁଛି ।

(ଏତେ କହି ଧର ଧର ବୋଲି, ପ୍ରାଣ ଛାଡ଼ିଗଲା ।)

---

କଥା କହୁଁ କହୁଁ ଏବେ ହେଲା ଏକି ବିପଦ ।
ସୁଖକାଳେ ଦୁଃଖ ଆଣି ଘଟାଇଲା ଦଇବ । ୧ ।
ସଜ ରାଜାର ସରସେ ତୋ ବଦନ କେମନ୍ତେ ବିରାଜୁ ଥିଲା ।
ଶୁହୁଁ ୨ କହୁଁ ୨ ମୁହୂର୍ତ୍ତକେ କେମନ୍ତେ କଳା ହୋଇଲା । ୨ ।
ଏ ବୃଦ୍ଧ କାଳରେ ବିଧାତା କୋଳରେ ଦେଇଥିଲା ପୁତ୍ରଗୋଟି ।
ଚନ୍ଦ୍ରହାସ ବୋଲି ବାଛି ନାମ ଦେଲି, ପଡ଼ିଅଛି ମହୀଲୋଟି ।।
ବ୍ୟାଧିର ପୀଡ଼ିତ କିଛି ନ ଥିଲା ତ ନ କହିଲ ଆଗ ହୋଇ ।
କେବାଣ ମାଇଲା କେବିଷ ଖୋଇଲା ବୁଦ୍ଧି ମୋତେ ବିଶୁନାହିଁ ।
ପତିବ୍ରତା ସତୀ ମଧ୍ୟରେ ଗଣନ୍ତି ତବ ସଙ୍ଗେ ଦେବି ପ୍ରାଣ ।
ଦୁଷ୍ଟବୁଦ୍ଧି ମନ୍ତ୍ରି ଅମୃତ ହନ୍ତା କହେ ଗୋପାଳ ଚରଣ । ୫ ।

( ଦୁଷ୍ଟବୁଦ୍ଧିର ଉକ୍ତି )

ବିଧାତା ବଳକୁ କର୍ମଅବଳକୁ ବ୍ୟାକୁଳ ହୋଇବା ଫଳ ନାହିଁ
ବିପୁଳ ସମ୍ପତ୍ତି ସମ୍ଭାଳିବା ଏଥି ତୁମ୍ଭ ଶ୍ରୀମୁଖରୁ ଆଜ୍ଞାନେଇ ।୧।
ଅଳ୍ପଳ ଦୁଲାଲ, ଦେଲେ ଅଷ୍ଟ ତୋଳ, ପାଳନରେ ମନ
ଯୋଗାନେଇ ।୨। ଏହି ମର୍ତ୍ତ୍ୟପୁର, କେଅଛି ଅମର, ବେଳ
ହେଲେ ଯାନ୍ତି ଆଗହୋଇ । କେକାହା କୁମର କେକାହା ପିଅର
ମାୟା ସଂସାରରେ କେହିନାହିଁ । ଗୋପାଳ କହଇ ଆତ୍ମାଧାଡି
ହେଲେ ଏଥୁ ଅଧିକରେ ପାପ ନାହିଁ ।୪।

( ରାଣୀର ଉକ୍ତି )

ସମ୍ଭାଳ ରାଜ ସଦନ ପାଳ ଚନ୍ଦ୍ରହାସକୁ । କାଳେ କାଳେ ରହି
ଥାଉ ପାଳନର ଯଶକୁ ।୧। ଧର୍ମଦେବ ଯେବେ ସାକ୍ଷୀ,
ପଞ୍ଚ ସଙ୍ଗେ ହେବ ଦୁଃଖୀ । ଚନ୍ଦ୍ରସୂର୍ଯ୍ୟ ପଶୁପକ୍ଷୀ ନ ଯୋଜିବ
ଦୋଷକୁ ।୨। ଏତେକହି ରାମାବର, ପ୍ରଦକ୍ଷିଣ ସପ୍ତବାର ।
ଗୋପାଳ ବୋଲେ ପଡ଼ି ଅନଳେ ଦେଲା ଝାସକୁ ।୩।

( ଦୁଷ୍ଟବୁଦ୍ଧିର ଦାସୀମାନଙ୍କୁ ଆଦେଶ )

ଦାସୀମାନେ ନେଇ ସମ୍ଭାଳ ଏବେ ଚନ୍ଦ୍ରହାସକୁ । ବେଳେ
ନସ୍ତତବ ରାଜ ସିଂହାସନର ପାଶକୁ ।୧। ବେଳେ ଆସି
ନାମ ଡାକ, ନକହିବ ମୋ ଆଗର । ଯେମନ୍ତେ ପୋଷେ
ଉଦର ନିଅ ତୁମ୍ଭ ପୌରଷକୁ ।୨। କେ କରାଏ କ୍ଷୀରପାନ,
କେ ଦିଅଇ ମିଷ୍ଟ ଅନ୍ନ । ଗୋପାଳ କଲା ରଚନ ଉତ୍କଣ
ପୀଢବାସକୁ ।୩।

(ଚନ୍ଦ୍ରହାସ୍ୟର ସ୍ତବ)

ଶ୍ରୀ ନନ୍ଦନନ୍ଦନ ଜଗତ ବନ୍ଦନ ଭକ୍ତ ହିତ ଦୀନବନ୍ଧୁ ।
ମୁରାରି ମୁକୁନ୍ଦ ଶ୍ରୀ ପରମାନନ୍ଦ, ସୁନ୍ଦର କୃପାମୟ ଇନ୍ଦୁ । ୧ ।
ଶ୍ୟାମଳ ସୁହାଳ ରୂପ ଛ ଉଜ୍ଜ୍ୱଳ, ପୂରିତ ତମିର ଇନ୍ଦୁ । ୨ ।
ଭଗତ ହନ୍ତକ ଅଖିଳ ପାଳକ ଗୋପାଳ ପାଦ ପଦ୍ମ ବନ୍ଦୁ । ୩ ।



ଋଷି—ହେ ରାଜକୁମର ଚନ୍ଦ୍ରହାସ ଆମ୍ଭେତ ସ୍ୱୟଂ ଭଗବାନ । ତୋତେ ଅନୁଗ୍ରହ କରି ଏହି ଶିଳାକୁ ଦେଉ ଅଛୁଁ ସଦା ସର୍ବ୍ବଦା ପାଖରେ ଥିଲେ ବିପଦ ପଡ଼ିବ ନାହିଁ । ତୋହର ଛଅ ଗୋଟି ଅଙ୍ଗୁଷ୍ଠି ଯେ ବିନୁକତା ଯିବ ସେହିନୁ ରାଜପଦ ପାଇବାର ସ୍ଥିର ।

ଋଷିଙ୍କର ରାଜ୍ୟରେ ପ୍ରବେଶ ।

ଚନ୍ଦ୍ରହାସ—ମୁନି ମହାରାଜ, ଆପଣ କେଉଁଠାକୁ ଗମନ କରୁଅଛନ୍ତି । ଆପଣଙ୍କ କାଖରେ ଏକି ପୁରାଣ । ତହିଁରେ ଭଗବାନଙ୍କ ନାମ ଥାଏକି ନା ?

ଋଷି—ଆରେ ପୁତ୍ର ଚନ୍ଦ୍ରହାସ ଏ ପୁରାଣ, ଭଗବାନଙ୍କ ବିଷୟ ଏଥିରେ ଅଛି ।

ଚନ୍ଦ୍ରହାସ୍ୟ—

ମୋତେ ଘେନିଯାଅ ମୁନିବର ରାଜ ସଦନ । ଦେଖିବା କେମନ୍ତ ହେବ ରାଜଦର୍ଶନ ।୧। ପାତ୍ର ମନ୍ତ୍ରି ଦ୍ୱିଜ ବୃନ୍ଦ, କେମନ୍ତେ ଛନ୍ତି ଆନନ୍ଦ । ଦେଖି ଘୁଞ୍ଚାଉ ବେଦ ପୁରାଣମାନ ।୨। ବିଷ୍ଣୁଙ୍କ ନାମ କେମନ୍ତ, ତହିଁ ହୋଇଅଛି ଖ୍ୟାତ । ଗୋପାଳ ଚରଣ ଶତ୍ର ତହିଁ ନମିତ ।

---

ଦୁଷ୍ଟବୁଦ୍ଧି—ମହାରାଜ, ଏବାଳକଟି କାହାର, ଏ ଅଷ୍ଟାଦଶ ଚିହ୍ନ ଧାରଣ କରି ଅଛି । ଜଣାଯାଏ ଏବଡ଼ ଭକ୍ତିମାନ ହେବ ।

ଋଷି—ହେ ଦୁଷ୍ଟବୁଦ୍ଧି ମହାରାଜ ! ଏ କୁନ୍ତଳ ସମ୍ରାଟଙ୍କ ପୁତ୍ର ଚନ୍ଦ୍ରହାସ । ଏହାଙ୍କୁ ଯତ୍ନକରି ପାଳନ କର ।

---

ବାଳକ ଗୋଟା ପାଇ ଏଠା କାଳକ ମୋହର ହେଲା । କାଳବାଳକୁ ହୃଦବ୍ୟାକୁଳ ମୋହର ନଷ୍ଟେ ରହିଲା ।୧। ଚନ୍ଦ୍ରମା କିଣି ସୁଷମା ରତନକୁ ତାଉ ବହିଲା । ଯେ ଅଷ୍ଟାଦଶ ଲକ୍ଷଣ ଯୁକ୍ତ ବିଧାତା ତାଠାରେ ଦେଲା । ୨ । ନେଇ ପୋଡ଼ାନ୍ତି ଜଳେବୁଡ଼ାନ୍ତି ନନ୍ଦାକୁ ଡର ହୋଇଲା । ଗୋପାଳ ଭଣେ ଲୁଣ୍ଠାଳ ଗଣେ ଘୁମୁକୁ ବେଗେ ଯାଇଲା । ୩ ।

---

ଦୁଷ୍ଟବୁଦ୍ଧି—ଆହେ ଶୃଗାଳଗଣ ତୁମ୍ଭେମାନେ କାନନ ମଧ୍ୟକୁ ନେଇ ଏହାକୁ କାଟି ଏହାର ରୁଧିର ଆଣିଲେ ତୁମ୍ଭକୁ ପୁରସ୍କାର ଦିଆଯିବ ।

---

ଚନ୍ଦ୍ରହାସର ସ୍ତବ ।

କାହିଁ ଗଲେ ଏବେ ପଦେ ଦୀନଜନ ପରିତ୍ରାଣ । ଗହନ କାନନ ମଧ୍ୟେ, ଚଳି ଯାଉଅଛି ପ୍ରାଣ । ପଦ । ଶୃଗାଳ ବୁଦ୍ଧି ଶୃଗାଳେ, ଭୁଲାଇ ଆଣି ଏସ୍ଥଳେ । ଦୁଷ୍ଟବୁଦ୍ଧି ମନ୍ତ୍ରି ବୋଲେ (ମୋତେ) ଦେଉ ଅତ୍ୟନ୍ତ କଷଣ । ୧ । ଶିଳା ଗୋଟି ଭୂଷେଇର, ଡାକେ ରାମ କୃଷ୍ଣ ହରି । ଗୋପାଳ ଦ୍ୱିଜ ବିଗ୍ରହ, ମାୟା କଲେ ନାରାୟଣ । ୨ ।

---

ଶୃଗାଳମାନଙ୍କର କଥୋପକଥନ ।

ଆହେଭାଇ ଆମ୍ଭେମାନେ ପୂର୍ବରେ କି ପାପ କରି ଥିଲେ ଯେ ଶୃଗାଳଘରେ ଜନ୍ମ ହେଲେ । ଏ ପିଲାକୁ ମାରି ଅବା କେଉଁ ଫଳ ପାଇବା । ଯାଉ ଏହାର ଛଅ ଗୋଟି ଅଙ୍ଗୁଳିରୁ ଗୋଟିଏ କାଟିକରି ନେଇ ସେ ରକତ ଦେଇ ପୁରସ୍କାର ନେବା ।



ଦୁଷ୍ଟବୁଦ୍ଧିର ଆନନ୍ଦ ।

ଠୋକା ଖଣ୍ଡକ ମୋତେ ଭଲ ଦକା ଦେଇଥିଲା । ଠେକା ମାଇଲା ପଣ୍ଡିତେ କିଷି ଯା ବାକ୍ୟ କହିଲା ।୧। ଚୋକା କରିଦେଲା ମୋତେ, ଲଖାଇଲା ଚଣ୍ଡାଳଙ୍କେ । ଠେକା ବାନ୍ଧିଣ ମାଥେ ଯେତେ ବେଳେ ବସିଥିଲା । ୨ । ମଦନ ମୋର କୁମର ସଦନେ ହେବ ଈଶ୍ୱର । ବଦନେ ଗୋପାଳ ତିର ରଦନକୁ କାମୋଡ଼ିଲା ।

-ଶ୍ରୀ-

ଶବର—

କାନନରେ ପଡ଼ିଅଛି କାହାର ଏ ନନ୍ଦନ । ହରେରାମ କୃଷ୍ଣ କହି କରୁ ଅଛଇ ରୋଦନ ।୧। ଜଗିଛନ୍ତି ମୃଗଗଣ୍ଡା ଆସି ଘେରି ଭଯି । ପକ୍ଷୀମାନେ ନାହିଁ ଘୋଷି, ବାହୁଛନ୍ତି ପବନ ।୨। ଚଉଦିଗକୁ ଚାହିଁଲା ପୁତ୍ରକୁ କୋଳେ ଧଇଲା । ଗୋପାଳ ଦ୍ୱିଜ କହିଲା, ମିଳଲା ନିଜ ସଦନ । ୩ ।



ଶବରଣୀ ।

କାହୁଁ ଆଣିଲେ ସୁକୁମାର କାହା ନନ୍ଦନ । ନ ଦେଖି ଜନନୀ ତାର ଛାଡ଼ିଛି ଯିବ ଜୀବନ । ପଦ । ରାଜ କୁମାର ପରି କୋଟି କାମ ନୋହେ ସରି । କେତେ କାଳ କୁଶଧାରି ଗଢ଼ିରଖିଲା ମଦନ । ୧ । ଦେଇ ଯାଇ ଦେଇ ଆସ, ଉଡ଼ି ଯିବନି ସାହସ । ଦଣ୍ଡ କରି ଦେବ ଶାପ, ଗୋପାଳ ପଦ ରଚନ । ୨ ।

---

ଶବର—ପ୍ରାଣେଶ୍ବରୀ, ଏହାକୁ ବନଜୀବମାନେ ବେଢ଼ିଥିଲେ, କେବଳ ଆମ୍ଭର ପୁତ୍ର ନ ଥିବାରୁ ଈଶ୍ବର ଦେଇ ଅଛନ୍ତି, ଆନନ୍ଦ ରୂପେ ପାଳନ କର । ଏହାକୁ ବିଦ୍ୟା ପଢ଼ାଇବା ।



ଚନ୍ଦ୍ରହାସର ପାଠଶାଳକୁ ଗମନ ।

ଏଥୁଅନନ୍ତରେ ଯେ ଚନ୍ଦ୍ରହାସ ଗଲା । ବିଦ୍ୟା ଗୁରୁ ପାଦେ ଯାଇଁ ଦଣ୍ଡବତ କଲା । ୧ । ଖଡ଼ି ଧରି ଗୁରୁ ତୋଳି ଦିଅନ୍ତି ଅକ୍ଷର । ଯେତେ ରୂପେ ବିଦ୍ୟାଗୁରୁ ପଢ଼ାଇଲେ ପାଠ । ଚନ୍ଦ୍ରହାସ ସଦାବେଳେ ଭଜେ ହରେ କୃଷ୍ଣ ।। ଅନେକ ମାରିଣ, ଗାଳିଦେଇ ବୋଇଲେ କୋପ ହୋଇ । କେତୁଣ୍ଡା କୁଳାଙ୍ଗାର ହୋଇଲୁ । ବନସ୍ତରେ ପଡ଼ିଥିଲୁ, କିପାଇଁ ନ ମଲୁ । ପାଞ୍ଚ ଶ୍ଳୋକ ଗୋପାଳ ବୋଲେ ଶୁଣ ଏଥର । ୩ ।

ଚନ୍ଦ୍ରହାସର ବିନତୀ ।

ଆହେ ବିଦ୍ୟାଗୁରୁ, ମୋତେ ଯାହା ଦଣ୍ଡିବାରେ ଦଣ୍ଡ । ହରେ
ରାମ କୃଷ୍ଣଚନ୍ଦ୍ର ନ ଚଳଇ ତୁଣ୍ଡ । ୧ । ଯାହାଙ୍କ ମହିମା ଖ୍ୟାତ
ଚଉଦ ବ୍ରହ୍ମାଣ୍ଡ । ଯେ ନାମ ଛାଡ଼ିଲେ ଆଉ ନ ରହିବ ପିଣ୍ଡ ।
ପାଦପରଶ ମାତ୍ର ଅବଳା ଶିଳାଖଣ୍ଡ । ଲଙ୍କା ବିଧ୍ୱଂସିଲେ
ଯେ ବାନର ହୋଇ ରୁଣ୍ଡ । ୩ । ଥଣ୍ଡା ହେଲେ ଗୁରୁଶୁଣି ଅଣ୍ଡା
ଚାର ବାଣୀ । ଯେଣ୍ଟା ନୁଆଇଁଣ ସେ ଘେନ ଗଲେ ପୁଣି । ୪ ।
ଛଣ୍ଡାଇ କହିଲେ ଯାଇଁ କୁଳନ୍ଦ ଆଗର । ଗୋପାଳ ବୋଲେ
ନ ପଢ଼ୁ ବିଷ୍ଣୁ ମୋ କୁମର । ୫ ।

ଧନ୍ୟ ବିଦ୍ୟାରେ, ବୀର ପଣରେ, ଟାଣ ହୋଇଲା କୁମର ।
ଶୁଣଇ ଯହିଁ, ଆଣଇ ବହି, ସମସ୍ତ ରାଜ ଭଣ୍ଡାର । ୧ ।
ପ୍ରଜା ମାନଙ୍କୁ, ଡକାଇ ତାଙ୍କୁ, ବୁଝାଇ କହେ ବଚନ ।
ଏକାଦଶୀର, ବ୍ରତକୁ କର, ନୋହିଲେ ତେଜ ଏସ୍ଥାନ । ୨ ।
ଶୁଣି କୁଳିନ୍ଦ ହୋଇ ଆନନ୍ଦ, ସିଂହାସନ ସମର୍ପିଲା ।
ଦିନକୁ ଦିନ, ନାମ ଭଜନ, ଅଧିକେ ତେଜ ବଢ଼ିଲା । ୩ ।
ଶୁଣରେ ଶିଷ୍ୟ, କୁନ୍ତଳ ଦେଶ, ରାଜାଙ୍କ ଅଧିନ ମୁହିଁ ।
ବାର୍ଷିକ କର, ପଠା ତତ୍‌ପର, ଗୋପାଳ ଚରଣ କହି । ୪ ।

---

କୁଳିନ୍ଦ—ଆହେ ଚଣ୍ଡାଳଗଣ, ତୁମ୍ଭେ କୁନ୍ତଳ ଦେଶକୁ ବାର୍ଷିକ କର ଦେଇଯାଅ ।

ଚଣ୍ଡାଳ—ଯେ ଆଜ୍ଞା ।

---

ଦୁଷ୍ଟବୁଦ୍ଧି—ଆରେ ତୁମ୍ଭେମାନେ ଭୋଜନ କର, ଯାଅ ।

ଚଣ୍ଡାଳ—ମହାରାଜ, ଆମ୍ଭମାନଙ୍କର ଏକାଦଶୀ ବ୍ରତ, ଆମ୍ଭେମାନେ ଅନ୍ନ ଖାଇବୁ ନାହିଁ ।

ଦୁଷ୍ଟବୁଦ୍ଧି—ତୁମ୍ଭଙ୍କୁ ଏକାଦଶୀ ବ୍ରତ କିଏ ଶିକ୍ଷା ଦେଲା ।

ଚମ୍ପାଳ—କୁଳିନ୍ଦ ରାଜାରପୁତ୍ର, ଚନ୍ଦ୍ରହାସ, ଆମ୍ଭଙ୍କୁ ଶିକ୍ଷା ଦେଇଛନ୍ତି ।

---

ଚମ୍ପାଳ ଜାଛି ମୁହଁ, ମେଣ୍ଢାଚର ଏ ଗୁଡ଼ା; ଦଣ୍ଡା ବୁଲା ଅଯଲ ଗୋଣ୍ଡାଲରେ ।୧। ପେଣ୍ଡାକର ଧଇଲେ, ସେଣ୍ଢାକୁ ମୋଡ଼ି ଦେଲେ, ଭେଣ୍ଡା ହୋଇ ଥିଲେ, କି ବଲରେ ।୨। କୁଣ୍ଡାପଟ ପଶଇ, ଗୁଣ୍ଡା କରବ ମୁହିଁ; ଅଣ୍ଡାଟା ହୋଇଣ କି ଭୂପାଳରେ । ଦଣ୍ଡା ବାଟରେ ଯାଇ; ଭଣ୍ଡାର ଲୋଟି ମୁହି; ଥଣ୍ଡା କରବ ରାଜ୍ୟ ସକଳରେ ।୪। ଗଣ୍ଡା ଗଣ୍ଡା ସଇନ, ଖଣ୍ଡା ବରଛି ଘେନ; କହଇ ପିଣ୍ଡାବସା ଗୋପାଳରେ ।୫।

---

କୁଳିନ୍ଦ—ଆହା ବଡ଼ ଭାଗ୍ୟ; ଆଜ ମୋର ଶବର ପୁର ପବିତ୍ର ହେଲା ।

ଦୁଷ୍ଟବୁଦ୍ଧି—ଆହେ କୁଳିନ୍ଦ, ଏପୁତ୍ର କାହାର କହ ।

---

ମହାରାଜ ଏପୁତ୍ର ନୋହେ ମୋହର । ବନସ୍ତରେ ପଡ଼ି ଥିଲା ଦେଇ ଅଛନ୍ତି ଈଶ୍ବର । ପଦ । କିଏ ଜନ୍ମ କରିଥିଲା; କାନନେ ପକାଇ ଗଲା, ଛଡ଼ଅଙ୍ଗୁଳି ଯାଉଥିଲା, କାଟି କେ ନେଲା ପାମର ।୧। ବନ ପଶୁ ଜୀବମାନେ; ଜଗିଥାନ୍ତି ରାତ୍ର ଦିନେ । ଗୋପାଳ ତରଣ ମନେ ଜାଣିଲା ଏବେ ବାହାର ।

---

ଦୁଷ୍ଟବୁଦ୍ଧି—ଆରେ ଏହିତ କୁନ୍ତଳ ସମ୍ରାଟଙ୍କପୁତ୍ର ଚନ୍ଦ୍ରହାସ । ଯାହାହେଉ ଏହାକୁ ଏକ ବୁଦ୍ଧି କରି ମାରିବା । ଆହେ କୁଳିନ୍ଦ ଖଣ୍ଡିଏ ପତ୍ର ଆମ୍ଭ ପୁତ୍ର ମଦନ ପାଖରେ ଦେବ ।

## ଦୁଷ୍ଟବୁଦ୍ଧି—

ଶବରରେ ତୋ ପୁତ୍ରକୁ ପଠା ଆମ୍ଭ ନଗର । ଯବର ମଦନ ପାଇଁ ସେ ଅଛି ଏକ ଖବର । ୧ । ଯିବ ଏହିକ୍ଷଣି ପୁତ୍ର ନେବ ଆମ୍ଭ ଠାରୁ ପତ୍ର । ଭାବ ବହିବଟି ପୁତ୍ର ପାଇଲେଟି ଖବର । ୨ । ପାଇବ ବଡ଼ ପୌରଷ । ପ୍ରାପ୍ତ ହେବ ସଢି ଦେଶ । ରହିବ ଗୋପାଳ ଯଶ ଲେଖେ ଏହି ଭାବର । ୩ ।

---

## ଦୁଷ୍ଟବୁଦ୍ଧିର ମଦନ ନିକଟକୁ ପତ୍ର ।

ଜୟ ଜଗନ୍ନାଥ, ମଦନ ଜ୍ୟେଷ୍ଠପୁତ୍ର, ସଦା ଆମ୍ଭ କଲ୍ୟାଣ ବାଞ୍ଛିତ । ଲେଖିଲି ତୋହର ହିତ । ଶଙ୍କେ ହେବୁ ନୃପନାଥ, ଏବଚନ କରିବୁ ନିଶ୍ଚିତ । ଯାହା ଠାରୁ ନେବୁ ପତ୍ର । ହେଳା ନ କରିଣ ମାତ୍ର । ବିଷଟିକୁ ଦେବୁ ତୁରିତ । ନୋହିଲେ ତୋହର ମାଥ । କାଟିବ ଯାଇ ତୁରିତ । ଗୋପାଳ ଚରଣ ରତ ।

---

## ଶବରର ପୁତ୍ରକୁ ଉପଦେଶ ।

ଧନ କୁଣ୍ଡଳ ଦେଖି ଅଛି ଜଣା; ନ ହେବୁ ତୁ କଣା । ଘଡ଼ିଏ ନ ଦେଖି ପିଣ୍ଡୁ ପ୍ରାଣ ଯାଏ ଛାଡ଼ି । ଛଡ଼ବଡ଼ି ନ ଅଇଲେ ଶିର ମୁଁ କମ୍ପୁଡ଼ି । ଭାତୁ ଥିବ ହର ଘଡ଼ି ତୋ ବଚନ ବୀଣା । ୧ । ବାଟଘାଟ ଦେଖି କାହିଁ ବିଶ୍ରାମ ସାରିବୁ । ପରସ୍ତ୍ରିରୀ ଦେଖି କାହିଁ କଥା ନ କହିବୁ । ଗୋପାଳ ବୋଲଇ ତୁ ମୋ ଦୁଃଖୀ ଧନ କଣା ।

---

### ଚନ୍ଦ୍ରହାସକୁ ଦେଖି କେମାଙ୍କର ଭାବନା ।

ନଗରବସ୍ତ ନାଗର କାହୁଁ ଅଇଲାରେ । ନାଗରଙ୍କ ଦମ୍ଭ ଆଉ ନ ସହିଲାରେ । ପଦ । ଦ୍ଵିଗ ମୋତେ ଦ୍ଵନ୍ଦ୍ଵ ନାହିଁ, ସୁନ୍ଦର ରୂପକୁ ଗୁହିଁ । କି ଯୋଗରେ ଗଢ଼ି ବିହି ଥୋଇଲାରେ ।୧। ନାଗର କେ ଜାଳ ବସି ସାଗରେ କେ ଥିବ ଝାସି । ନାଗରେ ବସାଇ ନଣି ପୋଡ଼ିବରେ । ୨ । ହୋଇଲାକେ ଅପଖ୍ୟାତ ଲୋକଯାଇ ଗୋଡ଼ାବନ୍ତି । ଗୋପାଳର ଲାଜଭୀତ ରହିଲାରେ ।୩

---

### କେମାଙ୍କର ସଖି ସହ କଥୋପକଥନ ।

କେମା—ସଜନୀ ଗୋ ଏ ମୋହର ସ୍ଵାମି ହୋଇ ଥାନ୍ତେକି, ଏପରି ସଂସାରରେ ପୁରୁଷ ବିଧାତା ଗଢ଼ିଥାଏ । ଦେଖତାଙ୍କ ଶିରପରେ ଗୋଟିଏ ଚିଟାଉ ଥୁଆ ହୋଇଅଛି । ଥିରକରି ଆଣ ପାଠ କରିବା । ଏତ ଆମ୍ଭ ପିତାଙ୍କ ହାତ ଚିଟାଉ । ଏପରି ନିଷ୍ଠୁର ହୃଦୟ । ବିଷ ଦେବାପାଇଁ ଲେଖିଛନ୍ତି । ଯାହାହେଉ ମୁଁ ଏଥିରେ ଗୋଟିଏ କୃତ୍ରିମ କରିବି । ବିଷୟାକୁ ଦେବ ।

---

### କେମାଙ୍କର ସହଚରୀ ପ୍ରେରଣ ।

ପଚାର ପଚାର ଦାସୀ ପଚାରଲେ ତାଙ୍କୁ ଯାଇଁ । ସୁଚାରୁ ନୟନା ରାଜ କେମାଙ୍କ ହେଲେକି ସାଇଁ । ହୋଇ ଅଛନ୍ତି ନା ବିଭା ଅବିବାହ କି ନବଯୁବା । ତାହାକୁ ହେବନା ଶୋଭା ବିଧାତା ଅଛି ଘଟାଇ । ପିତା ପାଶେ କରିଅଳ । କରିବ ମୋ ଗଳାମାଳ । ଗୋପାଳ ଚରଣ ଭାଳ, ମନୁ ପାଶୋରିବେ ନାହିଁ ।

---

### ଚନ୍ଦ୍ରହାସର ଉତ୍ତର ।

କୋଉ ଉରଜାର ଲୋକ କରି, ପାରିବୁ ଛ ପ୍ରେମ ଧନେ କିଣିନେଇ ରେ । ଥିଲେ ଭାଗ୍ୟ ଥିଲେ ଶୀକେ ଦୂରନୋହି, ଖଞ୍ଜି ରହିଥିବ ତା ପାଶରେ ॥ ଲୁଞ୍ଚି ପିନ୍ଧାଇଥିବି ବାସରେ, ନାନାଫୁଲ ଖଞ୍ଜିବ ବେଣୀପାଶରେ । ଆରେ ସାରସ ମୁହିଁ, ହେଲା କାଲେ ହରତାଳ ଅଙ୍ଗୀ, ଲେଖି ଦେଉଛୁ ପ୍ରେମ ପତର । ପଳାଇବାକୁ ନାହିଁ ଖାତରରେ ॥ ଆଉକି ଦଳଥିବ ମୋହରରେ । ଦ୍ୱିଜଗୋପାଳ କହି ପ୍ରେମଧନେ କିଣିନେଇରେ ।

---

### ରାଜ ଜେମାଙ୍କର ବିଦାୟ ।

ବିଦାହେଲି ମନେ କରିବଧନ । ନଧାର୍ଯ୍ୟ କହୁଛି ବିଧାତାର ଇଛା, ତୁମ୍ଭଠାରେ ରଖିଗଲି ଜୀବନ । ପଦା ବଳାଇ ଯିବାକୁ ପାଦ ନ ଉଠେ । ଆଉଡ ବଚନ ନସ୍ତୁରେ କଣ୍ଠେ । ଲୋକଖ୍ୟାତି ଉଭଚ ଶଙ୍କଟେ, କିକରି ପାରନ୍ତା ପାପି ମଦନ ।୧। ତୁମ୍ଭ ରୂପଗୋଟି ନେତ୍ରେ ଦେଖି, ସଂସାରେ ସାରକରି ବାଛି ଅଛି । ଗୋପାଳ ବୋଲଇ ଯାହା ମୁଁ ପାଞ୍ଚୁଛି, ପଣନ୍ତେ ବାନ୍ଧିବା ହେଉଚିମନ ।୨।

---

### ଚନ୍ଦ୍ରହାସର ଉକ୍ତି ।

ଚନ୍ଦ୍ରକର ଅଧରରେ ଆଉ ତୁ ଦଣ୍ଡେ ରହି ଯା ।
ଖଣ୍ଡ ବଚନରୁ ପଦେ କାନେ ଶୁଣାଇ ଦେଇ ଯା । ଘୋଷା ।
ଦଣ୍ଡ ଦେଉଅଛୁ ମାର, କାଣ୍ଡରେ ମରମମୋର ।
ଦଣ୍ଡକେ ନ ହେବ ସ୍ଥିର, ସ୍ନେହେ ଫେରିଣ ଚାହିଁ ଯା । ୧ ।
ତୁଣ୍ଡେ ନ କହୁ ବଚନ, ଦାଣ୍ଡରେ ହସିବେ ଜନ ।
ମୁଣ୍ଡ ବିକା ଗୋପାଳର, ହାତେ ଜୀବନ ନେଇ ଯା । ୨ ।

---

## ଦାସୀମାନଙ୍କର ପ୍ରବୋଧ ।

ଯାହା ହେବାର ହୋଇ ଗଲାଣି, କିମ୍ପା ଭାଳଗୋ ରାଜ ଦୁଲଣୀ । ଘୋଷା । ଦୁଷ୍ଟବୁଦ୍ଧି ପିତା ତୁମ୍ଭ ଦୁଷ୍ଟ, ଜନ୍ମେ ଜାଣିଲେ ହେବ ଅନିଷ୍ଟ, ତୁମ୍ଭେ ଅବବାଧି ସୁଲକ୍ଷଣୀ । ୧ । ଏତ ତୁମ୍ଭ ଅନୁରୂପେ ବର, ଜଣାଯାଏ ହୋଇବାରସ୍ଥିର, ଜନ୍ମେ ଘଟାଇଛ କୃଷ୍ଣପାଣି । ୨ । ଏତେକହି ଦାସୀ ପ୍ରବୋଧିଲେ, ନିଜ ସଦନକୁ ଚଳିଗଲେ, ଦ୍ୱିଜ ଗୋପାଳ ଚରଣ ଭାଳୁଣି ।

---

## ମଦନର ଆନନ୍ଦ ।

ପିତାକଲେ ବଡ଼ସୁବିଧ୍ୟର ଏବର ସ୍ଥିର । ରାଜ୍ୟରେ ଆମ୍ଭର ଘୋଷଣ କରିଅ ବିସ୍ତାର ବିଭାଘର । ନିଜ ଜନମାନ ପାଖକୁ ଯାଇଣ, ଆଜ୍ଞାଦେଲେ ଛତପର । ୧ । ଭାଟ ଜଉଛଷ ବ୍ରାହ୍ମଣ ଲକାରି, ମିଳିଲେ ବିଭାଘର । ବର କନ୍ୟା ଦୋହେଁ କନକ ବେଦିରେ ବ୍ରାହ୍ମଣ ବେଦ ଉଚ୍ଚର । ୨ । ବିଧିମତେ ସର୍ବକାର୍ଯ୍ୟ ତହାଇଲେ, ବିଜେ ମଧୁଶଯ୍ୟା ପୁର । ଗୋପାଳ ବୋଲେ ସେଦିନ, କି ଆନନ୍ଦ ଚନ୍ଦ୍ରହାସ ହୃଦୟାର । ୩ ।

---

## ଚନ୍ଦ୍ରହାସ୍ୟ ଗୀତ ।

ପୂର୍ଣ୍ଣି ବଡ଼ିଲୁ କାହିଁକି, ଉଣ୍ଣି ଦେ ମନରୁ ମାନ । କୁଞ୍ଚିତକେଶୀ ଆରେ ମୁଁ ତୋହର କୀଣା ଜନ । ୧ । ସୁରତରେ ବିଦାକର ରଞ୍ଜିତ ହେବ କାହାର । ଲୁଚ ପୁଷ୍କରଣୀ ତୀର, ଦେଖାହେଲ ଯେଉଁଦିନ । ଭୋଜନ କିବା ଶୟନେ ରହିଥାଉ ମୋନୟନେ, ଗୋପାଳର ସଦାଦିନ ରହୁହୋଇ ତୋ ଅଧିନ ।

---

### ବିଷୟାର ଉକ୍ତି ।

ସେହି କଳଘାଟ, ଯେଉଁ ବିନ୍ଦୁଭେଟ, ଯେତେ ମୁଁ କପଟ କରିଛି ହେ । ପିତା ଆମ୍ଭ ଦୁଷ୍ଟ, କରିଛି ଆକଟ, ଲୁଗ୍ନ ଇପଟି ମୁଁ ଥରିଛି ହେ ! ୧ । ସଦନରେ ଆମ୍ଭ ମଦନ ପାଖକୁ, ବିଷ ଦେବାପାଇଁ ଲେଖିଛି ହେ । ବଦନରେ ତାହାଙ୍କ ସ ମୁଁ କହିବି ବେଦଆଖିରେତ ଦେଖିଛି ହେ ।୨। ବିଷୟାକୁ ଦେବ ବୋଲିଣ ହୋଇଲ ଯହୁଁ ତୁମ୍ଭରୂପ ଦେଖିବ ହେ ! ପରିଚୟ ନେବା ବୋଲି ପଗ୍ଭରିଲି ଗୋପାଳତ ମନେ ରଖିବ ହେ । ୩ ।

### ମଦନର ପିତାଙ୍କଙ୍କୁ ଅନୁଚର ପ୍ରେରଣ ।

ଆହେ ଅନୁଚର ମାନେ, ଆମ୍ଭ ବିଷୟାର ବିଭାଘର ହେଲା, ପିତା ଜାଣି ନାହାନ୍ତି, ବିଭାଘର ସାମଗ୍ରୀ ନେଇକରି ଯା ।

### ଦୁଷ୍ଟବୁଦ୍ଧିର ଭାବନା ।

ମୋ କପଟକୁ କଟାଇଲାରେ ଦୁଷ୍ଟ କୁଳନ୍ଦ ଗୃଟ ।
ଙ୍ଗଟ ଯାଇ ଚାରି ଗଳାକୁ ମୋଡ଼ନ୍ତି, କାମୋଡ଼ି ହୋଇଲା ଓଷ୍ଠ
ଏ ନଟ ଘଟ ମଦନ ଲଗାଇଛି ଦେଖିବ ଅନଷ୍ଟ ବାଟ ।
ଗଟ ହୋଇଥାନ୍ତା କୁଟ ନ ବୁଝିଲା ବେଗେ ସାଜ ଗ୍ଭଜ ଥାଟ ।
ନାଟକ ବାଦ୍ୟରେ ଦିନ କଟାଉଛି ଗୋପାଳର ଢେଉଁ ବାଟ ।

### ମଦନର ଉକ୍ତି ।

ପିତା ଯେ ଆଜ୍ଞା କରିଲ ସ୍ଥିର । ଚନ୍ଦ୍ରହାସ ନେଇ ବିଷୟାକୁ ଦେଇ କରାଇଲୁ ବିଭାଘର । ପଦ । ଭାଟ ଜଗଛିଷ, ବ୍ରାହ୍ମଣ ଢଙ୍କାର, ଲୁଟ ଇ ଦେଲୁ ଭଣ୍ଡାର । ସକଳେ ସନ୍ତୁଷ୍ଟ, ହୋଇ ଗ୍ଭଜ୍ୟେ ଗଲେ, ପ୍ରଶଂସା ହେଲା ଅପାର ।୧। ବାଦ୍ୟ ଶବଦରେ, କମ୍ପେ ତିନ ପୁର; ଉଜ୍ଜ୍ୱଳ ହେଲା ସଂସାର । ଗୋପାଳ ବୋଲଇ, ଜେମା ଅନୁରୂପେ, ଚନ୍ଦ୍ରହାସ ଅଟେ ବର ।

## ଦୁଷ୍ଟବୁଦ୍ଧି ମଦନଙ୍କୁ ଭର୍ତ୍ସନା ।

ଖବର ଝୋଲାଟା ଆଣି ନବରେ ପୁରାଇ । ଜବାବ କେ ଦେଲ ତୋତେ ନବାବ କି ବୁଦ୍ଧି । ପଦ । ସ୍ୱଭାବେତ ଜଣାଥିଲା କି ଅଭାବ ମୋର । ବିଭା ଦେଲୁ ଯେକି ଜେମା ଅନୁ ରୂପେ ବର । ୧ । ବିଭାବସୁ ଖଣ୍ଟର କେ ବିଭା କରିବ । ଜବା ଅଧରଙ୍କୁ ମୋର ଅଭାବ ଘଟିବ । ୨ । ଯେ ଭାବ ଲେଖି ଥିଲି ସେ ଭାବ ନକରି । ଅଲାଭ କରିଲୁ ମାତ୍ର କଲାଭ ତୋହର । ୩ । କିକହିବି ତୋତେ ମୁହିଁ ସ୍ୱଭାବେ ନନ୍ଦନ । ସଭାରେ ହସିବେ କହେ ଗୋପାଳ ଚରଣ । ୪ ।



## ଜେମାର ବିନତି ।

ଶାନ୍ତ ହୋଇ କ୍ଷାନ୍ତକର ସବୁ ଦୋଷ ମୋର ।
ଜ୍ଞାତବ ପୁରୁଷ ତୁମ୍ଭେ କିକହିବୁ ମାତର । ପଦ ।
ଭୀଷ୍ମକ ନୃପତି ଥିଲେ ଶିଶୁପାଳଙ୍କୁ ବରିଲେ ।
ରୁକ୍ମିଣୀକି ହରିନେଲେ କାହୁଁ ଆସି ଶ୍ରୀଧର । ୧ ।
ଉଷାକନ୍ୟା ଚନ୍ଦ୍ରାବତୀ କେମନ୍ତେ ହୋଇଲା ରୀତି ।
ଗୋପାଳ ଚରଣ ଭଣନ୍ତି ଯେ ଯାହାର ସେ ତାହାର ।୨।

---

ଦୁଷ୍ଟବୁଦ୍ଧି—ଆହେ ପଣ୍ଡା ଗଉଳ ମାନେ, ଯେ ଅର୍ଘ୍ୟଥାଳି ଆଣିବ ତାହାକୁ ବଳିଦେବ ।

ପଣ୍ଡା—ଯେ ଆଜ୍ଞା ।

---

ହେ ପାପ ତାପ ନାଶିନି, ଭକ୍ତ ଆତଙ୍କ ନାଶିନୀ, ମହିଷା ମର୍ଦ୍ଦିନୀ ମା ଜଗତ ଉଦ୍ଧାର । ମୁଖେ ଭଜି ବନମାଳି, ହସ୍ତେ ଧରି ଅର୍ଘ୍ୟ ଥାଳି, ଗୋପାଳ ବୋଲେ ଚଳେ ଚନ୍ଦ୍ରହାସ ବୀର ।

ଚନ୍ଦ୍ରହାସ ଠାରୁ ମଦନର ଅର୍ଘ୍ୟଥାଳି ଗ୍ରହଣ ।

ମଦନ—ହେ ଚନ୍ଦ୍ରହାସ, ମୋତେ ଅର୍ଘ୍ୟଥାଳି ଦେଇ ତୁମ୍ଭେ ସଦନକୁ ଯାଅ । ଅର୍ଘ୍ୟ ଥାଳି ନେଇ ଦୁର୍ଗାଙ୍କୁ ଦଣ୍ଡବତ କରନ୍ତେ ହରି ହରି ବୋଲି ଖଡ଼ଗ ପକାଇ ଦେଲେ ।

---

ଦୁଷ୍ଟବୁଦ୍ଧି—କି ବାବୁ ଚନ୍ଦ୍ରହାସ, ତୁମେ ଅର୍ଘ୍ୟ ଥାଳି ନେଇ ଯାଇ ନାହିଁକି ।

ଚନ୍ଦ୍ରହାସ—ମୁଁ ତ ନେଇ ଯାଉଥିଲି, ମଦନଭାଇ ମୋଠାରୁ ଛଡ଼ାଇ ନେଲେ ।

ଦୁଷ୍ଟବୁଦ୍ଧିର ବିଳାପ ।

ଏସୁଖ ସମ୍ପତ୍ତି ସବୁ ସାରିଲିରେ । ପରେ ମନ୍ଦ ଚିନ୍ତି ପୁତ୍ର ମାରିଲିରେ ।ପଦ। ଯାହାଲାଗି କଲି ଛନ୍ଦ, ସେତ କରି ଗଲା ଅନ୍ଧ । ଗୋବିନ୍ଦଙ୍କ ମାୟାକୁ ନ ପାରିଲିରେ । ୨ । ସେହି ଦୁର୍ଗା ପାଶେ ଯାଇଁ ନିଜ ପ୍ରାଣ ହାରିବିରେ । ଗୋପାଳକୁ ଦୁଃଖ ପଙ୍କୁ ତାରିଲିରେ । ୩ ।

ଦୁଷ୍ଟବୁଦ୍ଧି—ଆହା, ଏଇତ ମୋପୁଅ ମଦନ ଦେହଖଣ୍ଡ ହୋଇ ପଡ଼ିଛି । ଏତେକହି ନିଜ ଗଳାରେ ଖଡ଼ଗ ମାଇଲା ।

ବାଞ୍ଚୁ ଚନ୍ଦ୍ରହାସ, ବାଞ୍ଚୁ ଚନ୍ଦ୍ରହାସ, ଧାଇଁଆସ ସବୁ ହେଲା ଶେଷ । ବାଳ କାଳୁ ଯେତେ କଷ୍ଟ କରିଥିଲେ ପିତାସୁତ ଦୁହେଁ ହେଲେ ଶେଷ । ମଦନ ହୋଇଲେ ନରବଳି; ଶୁଣିଦୁଷ୍ଟ ବୁଦ୍ଧି ଗଲେ ଚଳି । ପୁତ୍ରକୁ ଦେଖିଣ ବ୍ୟାକୁଳ ହୋଇଣ ନିଜ ଗଳେ ଖଡ଼ଗ ଗଲା ଗଳି । ପଡ଼ିଛନ୍ତି ଦୁର୍ଗାଙ୍କ ସମ୍ମୁରେ ଦେଖି ହାହାକାର ହେଲେ ନରେ । ଗୋପାଳ କହଇ ଶୁଣି ଚନ୍ଦ୍ରହାସ ପ୍ରବେଶ ହୋଇଲା ଦୁର୍ଗା ପାଶରେ ।

---

ଚନ୍ଦ୍ରହାସ—ଆହା ଏପିତା ପୁତ୍ର ଦୋହେଁ ମୋହର ଯୋଗୁଁ ମଲେ । ଯାହେଉ ମୁଁ ଏହି ଖଡ଼ଗ ଗଲାରେ ମାରି ମରିବି ।

ଦୁର୍ଗା—ରହରହ କୁମର ତୁ ବଞ୍ଚ୍ ଭକ୍ତ ତୋତେ ଅନେକ କଷ୍ଟ କରି ଥିଲେ, ମୁଁ ବଳି ଖାଇବି । ତୁ ଯେ ବର ମାଗିବୁ ସେ ବର ଦେବି ।

---

ଜୟ ଜୟ ଦୁର୍ଗେ ତ୍ରିତାପ ହାରିଣୀ, ଜୟଜୟ ଦୁର୍ଗା କାଳିକା । ଝମ ଝମ ଝମଙ୍କ ଶୂଳ ଗଳେଲମ୍ବେ ମୁଣ୍ଡ ମାଳିକା । ଲହ ଲହ ଜିହ୍ବା ଟହ ଟହ ହାସ ସହ ସହନକୁ ଗହ ଗହଭାଷ । ବହ ବହ ମୁଣ୍ଡ ମାଳ ବିଶେଷ; ଦୁଷ୍ଟଜନ ମାନ ଦଣ୍ଡିକା । ଏହିବର ଅମ୍ଭୁ କରନ୍ତୁ ମା, ଜୀବ ଦାନ ପାଆନ୍ତୁ ଏଯୁଗ ତାତ ଏହି ଯଶ ପୂରି ଥାଉ ଯେ ଜଗତେ ଗୋପାଳର ଦୁଃଖ ଖଣ୍ଡିକା ।

---

ଦୁର୍ଗା ମନ୍ଦିରେ ଲାଗିଛି କି ଉଚ୍ଛନ୍ନ । ଆଗେ ଉଠେ ଦୁଷ୍ଟ ବୁଦ୍ଧି ପଛେ ଉଠେ ମଦନ । ଧନ୍ୟ ଧନ୍ୟ ଚନ୍ଦ୍ରହାସ ତାଯଶ ହେଲା ପ୍ରକାଶ । ପୂରିଗଲା ଦଶଦିଶ ଗୃହିଁ ଛନ୍ତି ଦେବଗଣ । ଚନ୍ଦ୍ରହାସ ହେଲେ ରାଜା, କୁନ୍ତଳରେ ପାଳିପ୍ରଜା । ମଦନ ମନ୍ତ୍ରିରେ ଖଣ୍ଡା ଗୋପାଳ ପଦ ରଚନ ।

---

ସମାପ୍ତ ।

# ଉତ୍କଳ ପ୍ରେସ ପୁସ୍ତକାଳୟ।

| | | | |
|---|---|---|---|
| ଅଙ୍ଗଦପଦ | ଟ ୦ ୵ | ତାରୁ ଭୁଷ୍ଟ | ଟ ୦ ୵ |
| ଅବଳିଭ ସଂହିତା | ଟ ୦ ୵୬ | ଦଶମସ୍କନ୍ଧ ଗୋପଲୀଳା | ଟ ୦ ୦/ |
| ଅଶ୍ୱମେଧ ଯଜ୍ଞ | ଟ ୦ ୵ | ଦଣ୍ଡୀପର୍ବବାଳକୃଷ୍ଣପାଣ୍ଡବଚରିତ | ଟ ୦ ।୵ |
| ଆରତତ୍ରାଣ ଚଉଁଶା | ଟ ୦ ୵୯ | ଧ୍ରୁବମଞ୍ଜରୀ | ଟ ୦ /୩ |
| ଆରତଧ୍ୱଂସନ | ଟ ୦ / | ଧନ୍ୟକର୍ମ | ଟ ୦ ୯ |
| ସହଜ ଇଂରାଜି ଶିକ୍ଷା | ଟ ୦ ୲ | ନୂଆବହୂ | ଟ ୦ ୬ |
| ବୃହତ ଉପେନ୍ଦ୍ରଭଞ୍ଜ ସଙ୍ଗୀତ | ଟ ୦ /୬ | ନଟଭୋର | ଟ ୦ ୬ |
| ରେଲଗାଡ଼ି ଗୀତ | ଟ ୦ ୵୯ | ନାବକେଳି | ଟ ୦ ୯ |
| ଏକାଦଶସ୍କନ୍ଧ | ଟ ୦ ୲ | ନରମେଧ ଯଜ୍ଞ | ଟ ୦ ୵/୬ |
| କପଟପାଶା | ଟ ୦ /୩ | ନବସମାଟ | ଟ ୦ ୯ |
| କମଳାକାନ୍ତ ଚଉତିଶା | ଟ ୦ /୬ | ପୂଜାଫୁଲ | ଟ ୦ ।/ |
| କୌଶଲ୍ୟାରୋଦନ ଚଉଁଶା | ଟ ୦ ୵୬ | ପ୍ରଭାତ ଅବକାଶ | ଟ ୦ / |
| କୋଇଲ ମାଳିକା | ଟ ୦ / | ପ୍ରସ୍ତାବସିନ୍ଧୁ | ଟ ୦ ।/ |
| ଗୋପୀଭାଷା | ଟ ୦ ୯ | ବଭ୍ରୁବାହନ ଯୁଦ୍ଧ | ଟ ୦ ।/ |
| ଗୋପାଳଙ୍କ ଓଗାଳ | ଟ ୦ ୵ | ବର୍ଣ୍ଣପରିଚୟ ୧ମ ଓ ୨ୟ | ଟ ୦ ୵ |
| ଗଙ୍ଗାମହାତ୍ମ୍ୟ | ଟ ୦ । | ବଗୋଚ୍ଛଳ ୧ମ ଶିକ୍ଷା | ଟ ୦ /୬ |
| ଗୁଣସାଗର | ଟ ୦ ୵ | ବିଲଙ୍କାରାମାୟଣ | ଟ ୦ ୩ |
| ଭବନସ୍ତାରଣ | ଟ ୦ ୬ | ବିଷ୍ଣୁ ପୁରାଣ | ଟ ୦ । |
| ଦଣ୍ଡମଷା | ଟ ୦ ୬ | ବ୍ରହ୍ମାଣ୍ଡଭୂଗୋଳ | ଟ ୦ ୵ |
| ଜୈମିନି ଭାରତ | ଟ ୧ ୳ | ରସଗୋଷ୍ଠୀ | ଟ ୦ ୵ |
| ଢଳାଇଣା | ଟ ୦ ୵ | ଲଙ୍କାକାଣ୍ଡ ସୁଅଙ୍ଗ | ଟ ୦ ୵୬ |
| ଶ୍ରୀନାଥ ମେଳା | ଟ ୦ /୩ | ସୀତା ବିଳାପ | ଟ ୦ ୵୯ |
| ଭାବଭାବକ୍ତି ରସାମୃତ | ଟ ୦ ।୵ | ହରିନାମ ସଙ୍କୀର୍ତ୍ତନ | ଟ ୦ ୵୬ |

ଶ୍ରୀମଣିଲାଲ ମହାନ୍ତି ପ୍ରୋପ୍ରାଇଟର।

"ଉତ୍କଳ ପ୍ରେସ" ୮, ସେଣ୍ଟ ଜେମସ୍ସ୍କ୍ୱେର, ବଲ୍ଲୁବଜାର, କଲିକତା।

2035

